ଝିଅଲୋ ରୁଷିଛୁ କି,
ମୁହଁ ତୋହର ଶୁଖିଛି କାଇ ପାଇଁ ?
ଆଲୋ, ଆ...
କୋଳରେ ମୋ ପଶି ଯାଆ
ଧନରେ, ହେଇଛି କ'ଣ
କହି ଦେଇ ତୁ ଯାଆ ।
ଜମାରୁ ଡରନା ଧନ
ମନଖୋଲି କହିଯାଆ ।

ତୋ ଶୁଖିଲା ମୁହଁ ଦିଶୁଛି ମୋତେ
କରି ମୋତେ ହଂତସଂତ
କହିଦେ ଥରେ ଲୋ ଧୂନା
ଅଭିମାନ ଆଉ କରନା
କହଲୋ ଧନ
ଉଚ୍ଛନ୍ନ ମନ
କରୁଛି ବାଟବଣା ।

ତୋ ହସରେ ଦୁନିଆଁ ଯାକର
ଦୁଃଖ ଭୁଲି ମୁଁ ଯାଏଁ
କହିଦେ’ ଥରେ ଶୁଖିଛି କାଇ
ସୁଂଦର ତୋ କୋମଳ ମୁହଁ
ଆଲୋ ଧାଇଁ
ପଶି ଯା ମୋ କୋଳକୁ ଚାହିଁ।

ଯେଉଁଠି ସୁରକ୍ଷିତ ତୋ ସୁଂଦର ମୁହଁ
ସେ ଖାଲି ମୋର କୋଳର ଘର।
ଆଲୋ ଧନ ଆ’ ଜୀବନ ଗୀତ ଗାଇଯା’।

ଜାଣିଛୁ ତୋ ପାଇଁ ସାଇତିଛି
କେତେ ପ୍ରଜାତିର କଳ୍ପନା
ସଂଚିଛି କେତେ ଜଳ୍ପନା।
ଜମାରୁ କୁଣ୍ଠା କରିବୁନି ଧନ
ସବୁ ଯେ ତୋହର କଳନା
ଦେଖିଚାହିଁ ବିଚାର କରୁଥାଆ।

ବେଶୀ ଧାଇଁବୁନିଲୋ,
କାଳବେଳ ଭଲ ନାହିଁ
ଗିଳିଦେବ କାଳସର୍ପ
ନାରୀକୁଳେ ଜନମିଛୁ
ଦେଖିଚାହିଁ ଯାଆ ଆସ ହେଉଥାଆ।

ସଜାଗ ଥିବୁଲୋ;
କାଳସର୍ପ ହାବୁଡ଼ିଲେ ଫଁ କରିବୁ
ତା' ତଂଟିକୁ ଧରିବୁ
ନହେଲେ ଗିଳିଦେବ
କିଛିବାଟ ଛାଡ଼ିବନି
'ଆରୁଷି' କି 'ନିର୍ଭୟା'
କାହାକୁ ସେ ଛାଡ଼ିନି
ପିପିଲି ରୋଦନ ବଂଦ ହେଇନି
କାଳସର୍ପ ଖୋଜୁଛି
ଚିତ୍କାର; ଆଉ ଗୋଟେ ଚିତ୍କାର
ଯେଉଁ ଚିତ୍କାରରେ ମେଂଟେଇବ ଭୋକ।

କାଳସର୍ପର ଭୋକ ଖୁବ୍ ଭୟାନକ
ଦେଖିଚାହିଁ ଫଁ କରିବୁଲୋ
ଦଂଶିଦେଲେ ଦେହସାରା ବିଷ ଆଉ ବିଷ
କାଳସାରା ଯଂତ୍ରଣାର ଚୋଟ
ଦେଖିଚାହିଁ ଫଁ କରିବୁଲୋ।

କେବେ ବି ହତାଶ ହେବୁନି
କାଳ କାଳ ପାଇଁ
କୋଳ ମୋର ସାଇତା ତୋ ପାଇଁ
ତୋର ସବୁ ଯଂତ୍ରଣାକୁ କୋଳେଇବା ପାଇଁ
ହେଲେ ଯଂତ୍ରଣା ଆସିବା ଆଗୁ
ନିଜେ ସଜାଗ ଥିବୁ
ମହିଷାମର୍ଦ୍ଦିନୀ କି ଲକ୍ଷ୍ମୀବାଈଟିଏ ବନିବୁ।

'ବତିଶି ସିଂହାସନ' କି 'ପଂଚତଂତ୍ର'
ମନରେ ରଖିଥାଆ
ହେଲେ ଜୀବନ ପରି
ଜୀବନ ଜୀଉଁଥାଆ।
ତୁ ସୁଖରେ ଥାଆ
ତୁ ଭଲରେ ଥାଆ
ତୋର ସବୁ ଦୁଃଖ ଓ ଯଂତ୍ରଣା
ମୋ କୋଳକୁ ଫିଂଗି
ଆନଂଦରେ ରହିଥାଆ।

ବଳିତାରେ ନିଆଁ ଯୋଖିଲାବେଳେ
ତୋ ହସ ହସ ମୁହଁ ନିଇତି ଦେଖେ ।
ଆଜି କାଇଁ ଶୁଖିଲା ଦିଶିଲା ଧନ
ତୋ ସୁଂଦର, ନରମ, କୋମଳ ମୁହଁ ?
ତୁ ପରା ମୋ ସରଗ ଚାଂଦ
ତୁ ପରା ମୋ କୋଳର ଧନ
ତୁ ପରା ମୋ ଆତ୍ମାର ଅଂଶ ।

ଅଛି ଲୋ, ତୋ ପାଇଁ ମୁଁ ସବୁଦିନ
ତୋ ରାସ୍ତାର ସବୁ କଂଟାକୁ ଦେବାକୁ ଦୁରେଇ ।
ଯାଆ ମାଆ, ଯାଆ ଚାଲିଯାଆ
ଆଉ ଗୋଟେ ଲକ୍ଷ୍ମୀବାଈ ହୋଇ
ଡରିବୁନି ଧନ କେବେ
କାଳସର୍ପ ଜଗିଛି ସବୁବେଳେ
କରାଘାତ କରିବ କେତେବେଳେ
ନାରୀକୂଳେ ଜନମିଛୁ ବୋଲି
ସବୁ ତୁ ସହିଯା କହିବିନି ଲୋ ଧନ
ସଂସ୍କାର ଓ ସମାଜ ନା'ରେ
ଯେତେ ସବୁ ଭୋଜବାଜି ଖେଳ
ଜମାରୁ କହିବିନି ସବୁ ସହିଯାଆ
ଜମାରୁ କହିବିନି ଉଦାରତାରେ
ନିଜେ ଜଳିଜଳି ବଂଚୁଥାଆ ।

ସଂସାର ଏଠି ଖୁବ୍ ଅଭିନୟ କର।
ଦେଖିଚାହିଁ ପାଦ ଥୋଇବୁ ଧନ
ନହେଲେ କାଳସର୍ପ ଚୋଟ ମାରିଦେବ
ତୋ ବଂଚିବା ଦୁରୁହ କରିଦେବ।
ଅଛି ଲୋ ଧନ;
ତୋ ପାଇଁ ସୁରକ୍ଷିତ ମୋ
କୋଳ ଆଉ ମନ ।

ଭାବୁଛୁକି ତୁ ନାହୁଁ ମୋ ପାଶେ
ତୁ ତ ଚୀର ଦିନ ମୋ ଭିତରେ ବାହାରେ
ତୋ ଆସ୍ଥାନର ସ୍ଥାନ ରହିଛି ସେମିତି
ଯେମିତି ତୋ ଭୂମିଷ୍ଠ ବେଳରେ
ପେଟେଇବାବେଳେ,
ହାମୁଡେଇବାବେଳେ,
ଗୁରୁଂଡିବାବେଳେ ଆଉ
ତୋର କୁନି କୁନି ପାଦରେ
ମୋ ପାଖକୁ ଧାଇଁ ଆସିବାବେଳେ।

ତୁ ସବୁବେଳେ ସୁରକ୍ଷିତ
ମୋ ପାପୁଲିର ବଂଧନ ଭିତରେ
କି ମୋ କୋଳର ନିଭୃତ କୋଣରେ ।
ତୁ ଅଛୁଲୋ ମୋ ଭିତରେ ବାହାରେ
ସବୁଦିନ ସେମିତି
ଯେମିତି ତୁ ଥିଲୁ ଅତୀତରେ।

ତୋତେ କେତେ କିଏ ବାଟବଣା କଲେ
କି ମୋଠାରୁ ଦୂରେଇଦେଲେ
ତୁ କ'ଣ ଲିଭିଯିବୁ
ଛାତିର କୋରଡରୁ
ମନର ମଞ୍ଜିଲା ତୋ ଭାବରୁ
ହୃଦ ସାରା ଚରିସାରିବା ପରେ
କିଏ କି ଦୂରେଇପାରେ
ମୋ ଭିତରୁ ବାହାରୁ ?
ତୁ ଅଛୁ ଲୋ ସେମିତି
ଯେମିତି ଥିଲୁ ଅତୀତରେ ।

ସଂସାର ଏଠି ଖୁବ୍ କଂଟକିତ ଲୋ ଧନ
କଂଟା ରାସ୍ତାକୁ ଯେତେ ଚିହ୍ନାଇଲି
ନିଜ କର୍ତ୍ତବ୍ୟରୁ ବାହାରିଯିବାକୁ
ଫିଂଗିଦେଲେ କଂଟା-ଝଂଟାକୁ
ତୋ ଦେହରେ କାଳେ କଂଟା ଲାଗିଯିବ
ଛାତିରେ ଢ଼ୋକିଲି ଆଘାତ
ତୋ କଅଁଳ ପାଦର ରକ୍ତକୁ
ଦେଖିପାରିବିନି
ଛାତିରୁ କାଂଦିଲି ରକତ ।

ଛାତିର ରକ୍ତକୁ
ମଲମ କେମିତି ଦେବିଲୋ
କେଉଁକାଳୁ ଜମାଟ ବାଂଧିଲାଣି ।

ଜମା ସେ ଜମାଟବଂଧା ରକ୍ତକୁ ଉଖାରିବୁନି
ରକ୍ତର 'ସୁନାମୀ' ମାଡି ଆସିବ
'ଲେହର'ର ଆଶଂକାରେ ବ୍ୟତିବ୍ୟସ୍ତ
କାଳେ ହେଇଯିବୁ ।
ଥାଉଲୋ ସେ ରକ୍ତ ସେମିତି ଥାଉ
ତୁ ତ ଅଛୁ ମୋ ଛାତିରେ ସେମିତି
ଯେମିତି ଥିଲୁ ଅତୀତରେ ।

ତୋ ପାଇଁ କର୍ତ୍ତବ୍ୟର କରାଘାତେ
କେତେ ମୁଁ ସଂଚିଲି
ଜୀବନକୁ ଯତ୍ତ କରି
ଛାତିରେ ଜାକିଲି
ମୁହୂର୍ତ୍ତର କଂଟାକୁ
ଆଡେଇ ଚାଲିଲି ।

ତେବେ କି ଜାଣିଥିଲି-
ଏଦିନର ଦୁଃଖ
କଲିଜାକୁ ଚିପୁଡ଼ିବା ବେଳ
ହେଲେ କି କିଏ ପୋଛି ଦିଏ
ମୋ ଛାତିରୁ ତୋତେ ନେଇ
ଝରୁଥିବା ସ୍ନେହ
ଅଛୁଲୋ ତୁ ଏବେ ବି ସେମିତି
ଯେମିତି ଥିଲୁ ଅତୀତରେ ।

ଅଢ଼େଇ ବରଷ ଝିଅ
ପାଠ ପଢ଼ିବାକୁ ହୁଏ ଡର
ଚାଟଶାଳୀକୁ ନାହିଁ ତାର ଡର
କହେ ଖାଲି ଯିବ ସିଏ ବାରବାର।

ଯାଆ ଲୋ ଧନ
ପଢ଼ିବୁ; କେତେ ଜୀବନ ପାଠ
ହେଲେ, ମନେ ରଖିବୁ
ତୋ ପାଇଁ ଯାହା ଭଲ
ତାକୁଇ ସଂଚିବୁ।

ଅଦରକାରୀ ଥିଲିଲୋ ଧନ
ବାକି କର୍ତ୍ତବ୍ୟରୁ ଉଖାଡି ଫିଂଗି ଦିଆଗଲା
ଯେମିତି ନଥିବ ବାଉଁଶ
କି ବାଜିବ ନାହିଁ ବଇଶୀ ।
କିଏ କି ଜାଣିଲେ, ଶୁଣିଲେ
ବଂଦ ଘରର ଦରଜା ପଛର
ଆର୍ତ୍ତ ଚିତ୍କାରକୁ,
କି ତିଳତିଳ ହେବାକୁ ।

ଯେତେ ଦେଖାଇଲି ସ୍ୱଚ୍ଛତାକୁ
ବାରଂବାର ସେ ସ୍ୱଚ୍ଛପଣରେ
ଢ଼ାଳି ଦିଆଗଲା ଅସ୍ୱଚ୍ଛ ଶବ୍ଦଲିପି
ସେ ଶବ୍ଦଲିପି କିଏ କି ପଢ଼ିଲେ
ମଥାରେ ଖାଲି
କଳଂକ ଯୋଖିଲେ ।
କଳଂକର ଆତଂକ ଭୟରେ ଲୁଚିଲି
ଜନଗହଳରେ ହଜିଲି
ତେବେ କି ହଜିବା ଖୋଜିବାବେଳେ
ତୋତେ ଭୁଲିପାରିଲି ?

ବାପା ମାଆ ଟେକିଦେଲେ
ଜୀବନ ଜୀଇଁବାକୁ
ସେମାନେ କି ଜାଣିଥିଲେ
ଜୀବନରେ ନିଆଁ ଯୋଖିଦେଲେ
ସେ ନିଆଁକୁ ଅଂଟିରେ ଧରି କେବେ କ'ଣ
ଜୀବନ ଜୀଇଁ ହୁଏ ?
ଟୋପାଏ ନିଆଁକୁ ଗିଳିବା କୌଶଳ
ଶିଖାଇ ଛାଡି ଦେଲେ।
ହେଲେ ମନେରଖ ଧନ
ସେଭଳି ସଂସ୍କାର ସଳିତା ଧରି
ହେବୁ ନାହିଁ ତିଳ ତିଳ।

କାଳସର୍ପ ବୁଲିବୁଲୁଛିଲୋ
ଘର ଭିତରେ ବାହାରେ
ଦେଖିଚାହିଁ ଯାଆ ଆସ ହେଉଥାଆ
ଡସିଦେବ କେତେବେଳେ
ତୋ ସରଳ ମନ,
କଅଁଳ ଦେହକୁ
କହୁଥିବା ସବୁ କଥାକୁ,
ହସୁଥିବା ସବୁବେଳକୁ
ନିଘା ରଖିଛି ଧନ
ଦେଖିଚାହିଁ କଥା କହିବୁଲୋ
ଦେଖିଚାହିଁ ମୁରୁକି ହସ ଦେବୁ।

ଏଠି ହସିଲେ ଦୋଷ,
କହିଲେ ନିଂଦା,
ନୈବେଦ୍ୟର ଉପାସନାରେ କଳଂକ
କର୍ତ୍ତବ୍ୟ ବି ନୁହେଁ ଆକର୍ଷଣ
ବାନ୍ଧୁଥିବା ପ୍ରେମରେ କର୍ଷଣ।
ଏଣୁ କହିବିଲୋ ଧନ ସବୁ ଦେଖିଚାହିଁ
ଜୀବନ ଗୋଟେ ଜୀଇଁବୁ
ମନକୁ କରି ଟାଣ।

ଜମାରୁ ଆଉ କହିବିନିଲୋ ଧନ
ତୋ ସାମ୍ନାରେ ଘଟିଛି
କେତେ ଅକଥନୀୟ ଯଂତ୍ରଣାର ଘନ
ସଂସ୍କାର ସବୁ ଶେଷ ହେଲା ପରେ
ଥିଲା କି ଆଉ ସଂସ୍କାର
ଜୀଇଁବାର ସବୁ ବାଟ ବଂଦ ହେବା ପରେ
ଆଉ କି ଥାଏ ଜୀବନ
ମୃତ୍ୟୁକୁ ଆପଣାର କଲା ପରେ।

ହେଲେ ତୋ ସରଳ ମନକି
ବୁଝୁଥିଲା ସେସବୁ ?
ଏବେ ତୁ କାହୁଁ କେତେ
ବଡ ହୋଇଗଲୁଣିଲୋ ଧନ
ମୋ ଶବ୍ଦ କ'ଣ ଛୁଉଁଥିବ ତୋତେ,
ମୋ କୋଳକୁ କ'ଣ ଖୋଜୁଥିବୁ ଏବେ,
ମୋ ଛାତିରେ, ବାହୁରେ,
ବାଂଧି ହୋଇଯିବାକୁ
ମନ ତୋର କହୁଥିବ କି ଏବେ ?

କେଉଁଠି ତୋ ପାଇଁ
ଶୂନ୍ୟ ନାହିଁଲୋ ଧନ
କୋଳ, ମନ, ଆତ୍ମା
ସବୁରେ ଅଛୁଲୋ ସେମିତି
ଯେମିତି ଥିଲୁ ଅତୀତରେ।

ସଂସାର ଏତେ ଜଟିଳ ଜାଣିଥିଲେ
ରଖି ଦେଇଥାଂତି ଗର୍ଭରେ
ଆଦୌ ପୃଥିବୀର ତାତିକୁ ସହିବାକୁ
ଭୂମିଷ୍ଠ କରିନଥାଂତି,
ବାର ଘଂଟାର ଗର୍ଭ ବେଦନାକୁ
ଢ଼ୋକି ଦେଇଥାଂତି।

ଆ' ମାଆ; ମୋ ଗର୍ଭକୁ ଫେରିଆ'
କାଳବେଳ ଭଲ ନାଇ
ଯଂତ୍ରଣାର ଜୀବନକୁ
ବୋହିବାକୁ ନୁହେଁ
ମୋ କୁନି ଝିଅ,
ମୋ ଗେହ୍ଲା ଝିଅ,
ମୋ ପ୍ରେୟସୀ ଧନ।

ତୁ କନିଆ ସାଜିବୁ
ପରକୁ ନିଜର କରିବୁ
ମନେ ରଖିଥିବୁ
ନିଜ କଲିଜାକୁ ନିଜ ପାଖେ
ସାଇତି ରଖିବୁ ।

କଲିଜା ଖାଇବାକୁ ଏଠି
କୋରଡରେ ଝଡ ଉଠେ
କଲିଜା ନେବାକୁ ବଳ କଷା-କଷି,
ମରା-ମରି, ବ୍ୟଭିଚାରର କାହାଣୀ ।

କେବେ କହିବିନି ପରକୁ ଆପଣାର କର
ବରଂ ତୋ ପାଇଁ ଭଲ ହେବ–
'ତୋତେ କିଏ ଆପଣାର କଲା
ତାକୁ ଇ ଦେଖିବୁ'
ଏଇଟିକୁ ମୂଳମଂତ୍ର କରି
ଜୀବନ ଜୀଇଁବୁ
ସ୍ୱାର୍ଥପର ହେଇଯାଆଲୋ ଧନ
ନହେଲେ ନାରୀକୂଳେ ଜନମିଛୁବୋଲି
ତୋତେ ଝୁଣି ଖାଇଯିବ
ସଂସାର, ସମାଜ ଆଉ ପରିବାର।

କିଏ ଏଠି ନିଜର ନାହିଁଲୋ ଧନ
ସର୍ଭିଁଏ ଖାଲି ନିଜ ନିଜ
ସ୍ୱାର୍ଥରେ ବ୍ୟତିବ୍ୟସ୍ତ
ଏଣୁ ମନେ ରଖି ଥାଆ
ସ୍ୱାର୍ଥକୁ ନିଜର କରି
ଜୀବନ ବାଟ ଆଗେଇ ଚାଲିଥାଆ।

ଏବେ ଆଉ ଗାଂଧୀ କି
ମଦରଟେରେସା ନାହାଂତି
ତାଂକ ଅହିଂସା କି
ସେବାର
ନାହିଁ ଏଠି ଆଉ ମୂଲଚାଲ
ଫଟୋଫ୍ରେମ୍‌ରେ ବର୍ଷକୁ ଥରେ
ଆଦର ଆଂଜୁଳି
ପାଆଂତି ଜୀବନକୁ କରି ତିଳ ତିଳ।

ଏମିତି ଜୀବନ ଗଢ଼ରେ ଧନ
କଂଟା, ଆଘାତ, ଯଂତ୍ରଣା
ଆସିବାକୁ କରିବେ ଅନୁଶୋଚନା।

ଧନରେ ଡାକି ଦେ ଥରେ "ମାଆ"
ତରକ୍ଷ ମନ ହେଉଛି ବାଟମଣା
କାହୁଁ କେତେ ଦିନ ହେଲା
ଶୁଣିନାହିଁ ତୋର 'ମାଆ'
ତେବେ କି ଥରେ ଡାକିଦେ ଲୋ "ମାଆ"
କାହାକୁ କହିବିନି ଡାକିଲୁବୋଲି
ବିଚ୍ଛେଦର ପାଚେରୀକୁ ଡେଇଁ ଆ
ଥରେ ଡାକି ଦେ "ମାଆ"।

ଜୀବନକୁ ଦେ ମୋକ୍ଷ
ଡାକରେ ତୋର ସଂଜୀବନି
ଜୀଇଁବା କି ମରିବାକୁ ଆପଣାର କରି
ତୋ ଶବ୍ଦ ଫଗୁଆରେ
ଜୀବନ ଦେ ସଂଚି
ଡାକିବୁ କି ତାରିବୁ ଧନ
ବେଶୀ ବିଚାର କରନା।

ଜମା ବାଧ ହେବୁନି ଡାକିବାକୁ "ମାଆ"
ଶରଧାରେ, ସୁବିଧାରେ ଡାକ ଦେଉଥିବୁ ମାଆ
କଳଂକିତ ଜୀବନକୁ ପାରି କରି ଦେଇଯାଆ।

ସମାଜ କି ପରିବାର ପାଇଁ
ଯୋଗ୍ୟା ନୁହେଁ ଲୋ ଧନ
ବରଂ ଦୂରେ ଥାଇ ଟିକେ ଦେଖୁଥାଆ
ଯେଉଁଠି ଅଛୁ ସେଠି
ଆଜିର ମଣିଷ ପରି ସଂସ୍କାର ନେଉଥାଆ
ଏବର ସମାଜ ଓ ପରିବାର ପରି
ବଢ଼ି ତୁ ଚାଲି ଥାଆ ।

ଜାଣିଲି ନାହିଁ
ଜୀବନ ଗୋଟେ ଜୀଇଁବା
ନିଆଁକୁ ଆଦର କଲି ସିନା
ହେଲେ କି ସେ ନିଆଁ
ଆଲୁଅ ହେଲା
ହେଲା ପାଉଁଶ ଫରୁଆ
ଦେଲା ଖାଲି ଅପବାଦର ଜ୍ୱାଳା ।

ଜୀବନକାଳ ଗୋଟିଏ ଧନ
ବାରଂବାର କି ଜୀଇଁବା
ମନେ ରଖ ଭାବିଚିଂତି ପାଦ ଦେଉଥାଆ ।

ମୋ ସଂସ୍କାର ସଳିତା
କାଳେ କ୍ଷତ ଦେଇଦେବ
ଯେଉଁଠି ଅଛୁ ସେଠି ଥାଆ
ସମୟ ସହିତ ଜୀବନ ତାଳରେ
ଜୀବନ ଜୀଉଁଥାଆ ।

ଗାଂଧୀ ଆଉ ମଦରଟେରେସା
ଆଦର୍ଶକୁ ଦେଉଛି ସ୍ୟାଲୁଟ
ଜମାରୁ କହିବିନି ଲୋ ଧନ
ସେମାନଂକ ଆଦର୍ଶରେ ଚାଲି
ନିଜକୁ ଦେ ଯଂତ୍ରଣା,
ଜୀବନକୁ କରି ଦେ କଂଟା।

ତୁ ସୁଖରେ ଥାଆ ଲୋ ଝିଅ
ତୁ ଭଲରେ ରହିଥାଆ
ତୁ ଆନଂଦର ବଳୟରେ ହସିଖେଳି
ଜୀବନ ନଉକା ପାରିହୋଇ ଯାଆ
ମୋ କୋଳକୁ ଯେତେ ସବୁ ଯଂତ୍ରଣା
ଫିଂଗି ଦେଉଥାଆ।
ମୋ କୋଳକୁ ଯେତେ ସବୁ ଯଂତ୍ରଣା
ଫିଂଗି ଦେଉଥାଆ।

◆

## ସୁନୀତି ମୁଣ୍ଡଙ୍କ ଅନ୍ୟାନ୍ୟ କୃତି:

ପର୍ଦ୍ଦାପଛର ଚର୍ଯ୍ୟାପଦ(କବିତା)
ଶବ୍ଦ ଖେଳ (କବିତା)
ଯେତେସବୁ ସକାଳ (କବିତା)
ବେପଥୁ ବେହାଗ (କବିତା)
ଦସ୍ତାବିଜ୍ (କବିତା)
ଅନୁଷ୍ଟୁପ (ଗଳ୍ପ)
ଛାଇ ଓ ଅନ୍ୟାନ୍ୟ ଗଳ୍ପ (ଗଳ୍ପ)
ଅଭିଶପ୍ତା (ଉପନ୍ୟାସ)
ଭାଲେଣ୍ଟାଇନ୍ (ଉପନ୍ୟାସ)
ବ୍ରେଭ୍‌ର ଦୁଃଖ (ଉପନ୍ୟାସ)
ଅଗରବତୀର ଘର (ଉପନ୍ୟାସ)
ମାଟ୍ରିମନି ଡଟ୍ କମ୍ (ଉପନ୍ୟାସ)
ଜିଗୋଲୋ (ଉପନ୍ୟାସ)
ବଣ୍ଟୁ ଓ ଅନ୍ୟାନ୍ୟ ଗଳ୍ପ (ଅନୁବାଦ)
ଜିବ୍ରାନ୍‌ଙ୍କ ଜୀବନ ଜିଜ୍ଞାସା-୧ (ଅନୁବାଦ)
ଜିବ୍ରାନ୍‌ଙ୍କ ଜୀବନ ଜିଜ୍ଞାସା-୨ (ଅନୁବାଦ)
ରାଜସ୍ଥାନ ଏକ ପର୍ଯ୍ୟାଲୋଚନା (ଭ୍ରମଣ)
ଆଳାପ (ସାହିତ୍ୟ ବିନିମୟ)




₹ 20 /-

**JHIA**
Single poetry by **Suniti Mund**

**Dakshya Books**
*(A unit of dakshya venture pvt. ltd.)*

Cover design : Prakash Mohapatra